# ନଈପାଣି ଘୋ' ଘୋ'

ଦାଶ ବେନହୁର




କାଞ୍ଚନ
ଗଜପତି ନଗର, ସୁତାହାଟ, କଟକ-୭୫୩୦୦୧






ଲେଖକ

ଦାଶ ବେନହୁର

କଥାକାର-୬ମ-୧୬୧, ଶୈଳଶ୍ରୀବିହାର,

ଭୁବନେଶ୍ୱର-୭୫୧୦୨୧



ପ୍ରକାଶକ

**ସନ୍ତୋଷ ପବ୍ଲିକେଶନ୍ସ**

କାଞ୍ଚନ

ଗଜପତି ନଗର, ସୂତାହାଟ, କଟକ-୭୫୩୦୦୧

ଟେଲିଫୋନ୍ : ୦୬୭୧-୨୪୨୫୬୭୦

ମୁଦ୍ରଣ

ଅନ୍ନପୂର୍ଣ୍ଣା ପ୍ରିଣ୍ଟର୍ସ

ଗୋସାଣିନୂଆଗାଁ, ବ୍ରହ୍ମପୁର-୭୬୦୦୦୩

ମୋବାଇଲ-୯୮୬୧୦୧୧୩୫୬

ଅଳଂକରଣ

ମାଧବାନନ୍ଦ ରଥ

ପ୍ରଥମ ପ୍ରକାଶ

ବିଜୟା ଦଶମୀ-୨୦୧୧

ମୂଲ୍ୟ

ପଚିଶ ଟଙ୍କା

ISBN 978-81-86475-61-4

## କଥା ପଦେ...

ରସାଳ ପୁଣି ମଧୁର କଳା କୁଶଳତାରେ ଭରା ଅକ୍ଷର ଓ ଶବ୍ଦ ମାଧ୍ୟମରେ ଯାହା ମଣିଷର ସାଥୀ ହୁଏ ତା'ର ନାମ ସାହିତ୍ୟ । ତାହା କେତେବେଳେ ଗପ, ଉପନ୍ୟାସ, ନାଟକ, ଭ୍ରମଣକାହାଣୀ, ପ୍ରବନ୍ଧ ହୋଇ ସାଙ୍ଗ ହୁଏ ତ କେତେବେଳେ ଗୀତ, ସଂଗୀତ, କବିତା, ଢଗଢମାଳି ହୋଇ ନିର୍ମଳ ବନ୍ଧୁପଣର ସୁଖ ଦିଏ ।

ଏ ସଂକଳନରେ ଥିବା ଗୀତଗୁଡିକ ଚତୁର୍ଥ, ପଞ୍ଚମ ଡେଇଁ ଉପର ଶ୍ରେଣୀରେ ପଢୁଥିବା ପିଲାମାନଙ୍କୁ ଆଖିରେ ରଖି ଲେଖାଯାଇଛି । ଅସଲ ଉଦ୍ଦେଶ୍ୟ ହେଉଛି ଗୀତ ମାଧ୍ୟମରେ ସେମାନଙ୍କ ଭିତରର ମିଠାପଣକୁ ଟିକେ ତେଜେଇ ଦେବା, ଆନନ୍ଦ ଦେବା । କେଉଁଠି କେଉଁଠି ଆନନ୍ଦ ଭିତରେ ସେମାନଙ୍କପାଇଁ ଠାଏ ଠାଏ ଆଲୋକର ଝଲକ ବି ଅଛି । ଆନନ୍ଦ ସହିତ ଆଲୋକ ମିଶିଲେ ଖାଲି ପିଲାମାନଙ୍କୁ କାହିଁକି, ବଡ଼ମାନଙ୍କୁ ମଧ୍ୟ ତାହା ବେଶ୍ ଗ୍ରହଣୀୟ ଲାଗେ । ଏ ସଂକଳନରେ କିନ୍ତୁ ଆନନ୍ଦ ଉପରେ ଅଧିକ ଗୁରୁତ୍ୱ ଦିଆଯାଇଛି ।

ପାଠକପାଠିକାମାନେ ଗୀତଗୁଡ଼ିକ ପଢ଼ି ଆନନ୍ଦିତ ହେଲେ ଶ୍ରମ ସାର୍ଥକ ହେଲା ବୋଲି ମନେ କରିବି ।

ଦାଶ ବେନହୁର



## ଏଥିରେ ଅଛି...





# ନିଆରା ତା'ର ଛବି



ସଂଜ ନଇଲେ
ଆସଇ ରାତି
ଅନ୍ଧାର ଘୋଡ଼ା ଚଢ଼ି,
ନିଶବଦରେ
ଦଉଡ଼େ ଘୋଡ଼ା
ନ ଶୁଭେ ତା'ର ରଡ଼ି ।୧।

ପବନ ହସେ
ମୁଚିମୁଚିକା
ଅଳସ ବାଆ ବହେ,
ଗଛ ପତର
ଗାଆନ୍ତି ଗୀତ
ପଥର କଥା କହେ ।୨।





ନଈରେ ମାଛ
ଆଉଜି ଶୁଏ
କଇଁଛ ବୁଲେ କୂଳେ,
ବିଲୁଆ ହସେ
ବଡ଼ ପାଟିରେ
କିଆ ଗୋହିରି ମୂଳେ । ୩ ।

ବାଦୁଡ଼ି ଉଡ଼େ
ଫଡ଼ର ଫଡ଼
ହୁଉଟୁ ଡାକେ ପେଚା
ଡରୁଆ ମୂଷା
ଲେପେଟି ରହେ
ଦେହକୁ କରି ମେଞ୍ଚା ।୪।

ଲୁମ୍ବୁଲୁମିଆ
ଭାଲୁ ପରିକା
ନିଇତି ରାତି ଆସେ,
ରଜନୀଗନ୍ଧା
ମୁହଁ ଲୁଚାଇ
ଫୁରୁଫୁରିଆ ବାସେ (୫)

କିଏ ସେ ଡରେ
କିଏ ସେ ହସେ
କିଏ ବା କରେ ମଜା,
କିଏ ସେ କାନ୍ଦେ
ସୁଉକୁସୁକୁ
କିଏ ସେ ଖାଏ ଖଜା । ୬ ।

ରାତି ଗୋଟାଏ
ଅନ୍ଧାର ବହି
ନିଆରା ତା'ର ଛବି,
ମୂଲିଆ ପୁଅ
ନିଘୋଡ଼େ ଶୁଏ
କବିତା ଲେଖେ କବି । ୭ ।





# ଯେତେ କହୁଥିଲେ ସରିବ ନାହିଁ



ମେଘ ଉଠେଇଲା କଳାହାଣ୍ଡିଆ
ଅନ୍ଧାର ଆସିଲା ମାଡ଼ି,
ସାଇଁ ସାଇଁ ଡାକି ଥଣ୍ଡା ପବନ
ଛାଇଗଲା ବିଲବାଡ଼ି । ୧ ।

ଜେଜେ ମା' କହିଲେ ମେଘରେ ମେଘ
ତୁ ଏଇଲେ ଏଠୁ ପଳା,
ଲିକୁନି ଶୋଇଛି ଉଠି ପଡ଼ିବ
ରୂପ ଦେଖି ତୋର କଳା । ୨ ।





ପାଟିଟା ତୋହର ଘଡ଼ଘଡ଼ିଆ
ଶୁଣିଲେ ମାଡ଼ଇ ଡର,
ହସିଦେଲେ ତୁହି ଝଲସି ଯାଏ
ଚମକି ଉଠଇ ଘର । ୩ ।

ନିଘୋଡ଼ ନିଦରେ ଶୋଇଛି ସିଏ
ଘୋଡ଼େଇ ପୋଡ଼େଇ ହୋଇ,
କଞ୍ଚାନିଦ ହୋଇ ଉଠିବ ଯଦି
ବାହାର କରିବ ଖୋଇ । ୪ ।

ଯେତେ ବୁଝେଇଲେ ବୁଝିବ ନାହିଁ
ଅଝଟ କରିବ ଖାଲି,
"କହ ମତେ କହ ବହୁତ ଗପ"
ନ ହେଲେ ରହିବ ଘାଲି । ୫ ।

ଗପଗୀତ ଯେତେ କହିଲେ ତାକୁ
ମାନେ ନାହିଁ ତାର ମନ,
ଅସରନ୍ତି ଗପ ଖୋଜୁଛି ସିଏ
ଶୁଣିବାକୁ କନକନ । ୬ ।

ବୁଢ଼ୀ ଅସୁରୁଣୀ ଗେଟା ଅସୁର
ବାଇଭୂତ, ରାଜାରାଣୀ,
ଜଙ୍ଗଲ ରାଇଜ ପରୀ କାହାଣୀ
ସବୁ ତା'ର ସରିଲାଣି । ୭ ।

ମେଘଭାଇ କାହୁଁ ମେଘ ରାଇଜୁ
ଆଣିଦିଏ ଗୋଟେ ଗପ,
ଯେତେ କହୁଥିଲେ ସରିବ ନାହିଁ
ଝରୁଥିବ ଥପଥପ । ୮ ।





## ଚକୋଲେଟ୍

ଶୀତ ସରିଗଲେ ଖରା
ଆସେ ଥିରି ପାଦରେ,
ବସନ୍ତକୁ ଡାକି ଆଣେ
ଗେଲ କରି ସାଦରେ । ୧ ।

ଖଟା ମିଠା ଚକୋଲେଟ୍
ପରି ମିଳେ ପରଶ,
ଖରା ଶୀତ ଗୋଳି ହୋଇ
ଲାଗେ ବଡ଼ ସରସ । ୨ ।

ନିରବରେ ଝଡ଼ିପଡ଼େ
କେତେ କେତେ ପତର,
ନାନା ଜାତି ଫୁଲ ଫୁଟି
ଖେଳିଯାଏ ଅତର । ୩ ।

ନୂଆ ପତରରେ ଦିଶେ
ଆଗାମୀର ସପନ,
ମଳୟର ଛୁଆଁ ପାଇ
ହସୁଥାଏ ପବନ । ୪ ।

ବଉଳର ବାସ ନେଇ
ବସନ୍ତ ଯେ ଆସଇ,
ମନଜିଣା ମହୁବାସେ
ତୋଟାମାଳ ଭାସଇ । ୫ ।

କେଉଁଆଡ଼େ ଲୁଚିଥାଏ
ଲାଜକୁଳୀ କୋଇଲି,
ଲୁଚି ଲୁଚି ଆସି କହେ
ଆସିଲି ମୁଁ ଆଇଲି । ୬ ।

ଗୀତ ତାର ଚମକାଏ
ଗାଆଁ ଭୂଇଁ ସହର,
ସକାଳ ହେଉ କି ସଂଜ
ହେଉ ଦିହି ପହର । ୭ ।

ବସନ୍ତର ରଙ୍ଗରୂପ
କେ କରିବ କଳନା,
ଏମିତିକା ଋତୁ ସିଏ
ନାହିଁ ତା'ର ତୁଳନା । ୮ ।





# ଏଇ ଯେ ସକାଳ

ରାତିର କବାଟ    କିଏ ଖୋଲିଦେଲା
କିଏ ସେ ମୋଡ଼ିଲା ଚାବି
କୁକୁଡ଼ା, ବତକ    କାଉ, କୁମ୍ଭାଟୁଆ
ସଭିଏଁ ଉଠିଲେ ରାବି ।୧ ।



ଏଇ ଯେ ସକାଳ    ସୂରୁଯ ଉଇଁଛି
ମୁହଁରେ ହସୁରା ନାଲି,
ପରଶେ ତାହାର    ଜଉକି ଉଠୁଛି
ଦରିଆ ତଟର ବାଲି ।୨ ।

ଉତୁରି ଆସୁଛି    ଢେଉ ଢେଉ ଖରା
ପାହାଡ଼ ମଥାନ ଛୁଇଁ,
ଉଜଳି ଦିଶୁଛି    ସହର ବଜାର
ଗାଆଁଗଣ୍ଡା ବଣଭୂଇଁ ।୩ ।



ପବନ ଦୋଳୁଛି ପତରେ ପତରେ
ପାଣିରେ ଲହରୀ ଖେଳେ,
ପୋଖରୀ ପାଟରେ ସୋରି ସୋରି ବାଆ
ନାଚୁଛି ତରଙ୍ଗ ମେଳେ ।୪ ।

ଫୁଲରୁ ଫୁଲରୁ ଫିରିଫିରି ବାସ
ମହକ ଛୁଟାଇ ବୁଲେ,
ଚମ୍ପା, ନାଗେଶ୍ୱର ନିଆଳୀ, କେତକୀ
ମାଳତୀ, ମାଧବୀ ତୁଲେ ।୫ ।

ସକାଳ ପାହିଲେ ନିତି ଗଢ଼ି ହୁଏ
ନୂଆ ଆରମ୍ଭର ଆଶ,
ଆଲୋକ, ମହକ ଭରିଦିଏ ମନେ
ସଜଫୁଟା ଅଭିଳାଷ ।୬ ।

ରାତିକୁ ହଟାଇ ସକାଳ ଆସଇ
ଦୁଃଖ ପରେ ସୁଖ ପରି,
ସବୁ ମନ୍ଦ ପରେ ଭଲଟିଏ ଅବା
ରହିଅଛି ଅନୁସରି ।୭ ।





# ଖରାଛୁଟି



ସବୁଥର ପରି ଏଥର ସରିଲା
ଲମ୍ବାଳିଆ ଖରାଛୁଟି,
ବେପରୁଆ ଭାବ ନିମିଷକେ ମୋର
କିଏ ସତେ ନେଲା ଲୁଟି ।୧।

ଦିଶିଗଲା ମତେ ସଫା ଝଲଝଲ
ଛବି ବହିଟିଏ ପରି,
ଛୁଟି ଆରମ୍ଭରୁ ଶେଷଦିନ କଥା
ସବୁ ଗୋଟି ଗୋଟି କରି ।୨।

ପରୀକ୍ଷାର ଫଳ ବାହାରୁ ବାହାରୁ
ଉପର ଶ୍ରେଣୀର ବହି,
ବଜାରକୁ ଯାଇ ବାପା ଆଣିଦେଲେ
ମନ ଦେଇ ପଢ଼ କହି ।୩।





ବହିର ବାସନା        ଭଲ ଲାଗେ ମତେ
ଫିଟେଇ ଧରିଲେ ମୁହେଁ,
ସତେ ଅବା ସିଏ        ନୂଆ ସାଥୀଟିଏ
ଆପଣାର କଥା କୁହେ ।୪।

ପଢ଼ା ବହି ସାଥେ        ପଢ଼ିଲି ମୁଁ କେତେ
ଗପ, ଗୀତ ବହି ଆଣି,
ଭଲ ଭଲ ଯେତେ        ମଜାଳିଆ ବହି
ଭାଇ ଆଣିଥିଲେ ଛାଣି ।୫।

ମାମୁଘର ଗଲି        ତୋଟାରେ ବୁଲିଲି
ଘୂରିଲି ମୁଁ ନଈକୂଳେ,
କେତେ ଦି' ପହର        ଅଳସ ବିଳାସେ
କଟାଇଲି ଗଛମୂଳେ ।୬।

ପିଜୁଳି ଖାଇଲି        ପଦୁଅଁ ତୋଳିଲି
ଦେଖିଲି ଚଢ଼େଇ ବସା,
ଖଟାମିଠା କୋଳି        ଖାଇଲି ମୁଁ କେତେ
ଚାଖିଲି ମଧୁର କଷା ।୭।

ମାମୁ ମାଇଁଙ୍କର ଆଦର ସେନେହ
କଅଁଳ ସରାଗ ଡାକ,
ଶୁଭିଯାଉଥିଲା ଫେରିଲି ମୁଁ ଯେବେ
ଲେଉଟାଣି ବାଟଯାକ ।୮।

ଘରକୁ ଫେରିଲି ପୁଣି ପଶିଗଲି
ଧରାବନ୍ଧା ଗୁଳା ବାଟେ,
ଖୋଲା ଜୀବନର ମଜା ଯେ ପାଇଛି
ବନ୍ଧନ ତାହାକୁ କାଟେ ।୯।

ଏଇ ଛୁଟି ମତେ ଦେଇଦେଲା କେତେ
ଖୋଲାମେଲା ଅନୁଭବ,
ଭାବେ ମୁହିଁ ମନେ ଛୁଟିଟା ନ ଥିଲେ
ମିଳନ୍ତା କି ପରାଭବ ।୧୦।

ଛୁଟି ଆଣିଦିଏ ଛୁ'ମନ୍ତର ପରି
ଅଭୁଲା ଆନନ୍ଦ କେତେ,
ଅନୁଭବୀ ଜାଣେ ତା'ଭିତର କଥା
ନ ସରେ କହିଲେ ଯେତେ ।୧୧।





# ମଉଜେ ମନ ଦୋଳେ

ଖରା ହଟିଲେ
ବୁଡ଼ଇ ବେଳ
ବଦଳି ଯାଏ ଧରା,
ଦିନର ଛବି
ଓଲଟି ଯାଏ
ଆକାଶେ ଉଏଁ ତାରା ।୧।

ଗଛରେ ଦିଶେ
ଜୁଳୁଜୁଳିଆ
ପବନ ସରସର,
ମୁହଁକୁ ମୁହଁ
ଦିଶେ ନା ଆଉ
ଫେରନ୍ତି ସବୁ ଘର ।୨।





ଆସିଲେ ରାତି
ଅନ୍ଧାର ଆସେ
ଦିଶେନା ବାଟ ଘାଟ,
ଆଲୁଅ ଯହିଁ
ନ ଥାଏ ତହିଁ
ଭେଳିକି କରେ ନାଟ ।୩।

ଡେଣା ମେଲାଇ
ନିଗିଜନରେ
ରାତି ଆସଇ ଥିର.
ଥୋଲକି ପଡ଼େ
ଝିଙ୍କାରି ଡାକ
ଅନ୍ଧାର ଛାଡି ଚିରି ।୪।

ପଡ଼ା ସରିଲେ
ଆଲୁଅ ଲିଭେ
ରାତି ହୁଅଇ ଗାଢ଼,
ଆଖି ବୁଜିଲେ
ପଲକେ ଦିଶେ
ପୋଖରୀ ବନ୍ଧ ବାଡ଼ ।୫।

ମୁଦା ଆଖିରେ
ଚହଲି ଯାଏ
କେତେ ଆଲୁଅ ଛାଇ,
ହେଇ ତ କିଏ
ଡେଇଁ ଡେଇଁକା
ଆସୁଛି ଥାଟେ ଧାଇଁ ।୬।

ପଡ଼େନା ଜଣା
କେତେବେଳକେ
ନିଦ ମାଉସୀ କୋଳେ,
ଉଭେଇ ଯାଏ
ଭାବନା ସବୁ
ମଉଜେ ମନ ଦୋଳେ ।୭।

❑



# ବରଷା ଆସେ



ଗ୍ରୀଷମ ଶେଷେ
ଆଷାଢ଼ ମାସେ,
ଖରା ପିଠି ଚଢ଼ି
ବରଷା ଆସେ ।୧ ।

ମେଘ ଡାକ ଦିଏ
ଘୁଡୁରୁ ଘୁଡ୍ରୁ,
ଶୁଖିଲା ପତର
ଖୁଡୁରୁ ଖୁଡୁ ।୨ ।

ଟପ ଟପ ପାଣି
ପବନ ଖର,
ଧାଇଁଥାଏ ମେଘ
ତଅର ତର ।୩ ।

ପାଣି କି ପବନ
ଗୋଡ଼ିଆ ଗୋଡ଼ି,
ହେଇ ଧରାଧରି
ଛଡ଼ିଆଛଡ଼ି ।୪ ।

ଏଇ ଦୁମୁଦୁମୁ
ହେଇଲେ ଥିରି
ସୁଆଡି ପବନ
ଫିଇରି ଫିରି ।୫ ।

ଭୀମ ରଡ଼ି ଛାଡ଼ି
ହେଣ୍ଡାଲେ ମେଘ,
ମେଘ ନୁହେଁ ସିଏ
ଆକାଶ ବାଘ ।୬ ।



ବାଘ ଡାକ ଦେଲେ
ବିଜୁଳି ଖସେ,
ନଈ, ନାଳ, ବଣ
ହାଲୋଳ ଦିଶେ ।୭ ।

ଶୁଖିଲା ଶୁକୁଟା
ଉଷର ଭୂଇଁ,
ଦିନ କେଇଟାରେ
ଉଠଇ ଚେଇଁ ।୮ ।

କାହିଁ ଶୋଇଥାଏ
ଭୋକିଲା ନଈ,
ଧାଏଁ କିଡିକିଡି
ଉଛନ୍ନ ହୋଇ ।୯ ।

ଆଷାଢ଼ ଆସିଲେ
ବରଷା ଆସେ,
ମଲା ମାଟି ପୁଣି
ଜିଅନ୍ତା ବାସେ ।୧୦ ।







# ପାହାନ୍ତା ମହକ

ଫୁକିଆ ଲୁଚିଲେ
ସୂରୁଜ ଉଠେ,
ଚବ ଚବ ଶୁଭେ
ଗାଧୁଆ ତୁଠେ ।୧।

ଧୀରେ ଖେଳିଯାଏ
ସୁନେଇ ଖରା,
ପାଣି ଡବ ଡବ
ପିତଳ ଗରା ।୨।

ଚଢ଼େଇ ଛୁଆର
ଅଳସ ଭାଙ୍ଗେ,
ଚିଇଁ ଚିଇଁ ଡାକି
ମାଆକୁ ଖୋଜେ ।୩।

ମାଆ ଯାଇଥାଏ
ଆହାର ଖୋଜି,
ଆସିଲେ ଖୋଇବ
ପାଟିରେ ଗୁଞ୍ଜି ।୪।

ଫୁରୁ ଉଡ଼ିଯାଏ
ଘରଚଟିଆ,
ଆଖି ମଳି କାନ୍ଦେ
ଆମ ନଟିଆ ।୫।

ବାଛୁରି ଖୋଜୁଛି
ମାଆକୁ ତା'ର,
ଖାଇବା ପାଇଁକି
ପହ୍ନାରୁ କ୍ଷୀର ।୬।

ନାଲି ନାଲି କଇଁ
ପୋଖରୀ ସାରା,
ପାଣି ଆକାଶରେ
ନାଲିଆ ତାରା ।୭।

ସକାଳର ମୁହଁ
ଦେଖିବ ଯିଏ,
ପାହାନ୍ତା ମହକ
ପାଇବ ସିଏ ।୮।

❑



# ପାଠ ମନ୍ଦିର



ଛୁଟି ସରିଲା ଖୋଲିବ ଆଜି
ଆମ ଇସ୍କୁଲ ଘର,
କେମିତି ଯାଇ ପହଞ୍ଚିବାକୁ
ଲାଗୁଛି ଡରଡର ।୧ ।

ଖରାଛୁଟିଟା ମଉଜେ ଗଲା
ଏଇ କାଲିକା ପରି,
ଆଇସ୍‌କ୍ରିମ୍ ଭଳିକା ଛୁଟି
ନିମିଷେ ଗଲା ସରି ।୨ ।



ମନେ ପଡୁଛି ଇସ୍କୁଲ ହତା
ଦିଶୁଛି କଳାପଟା,
ବରଷା ଦିନେ ଗତ ବରଷ
କେମିତି ହଟହଟା ।୩ ।

ଗଛଲତାରେ ଭିତର ଭରା
ସୁନ୍ଦର ଦିଶେ ଭାରି,
ଖରା ଗରମ ପଡ଼େନା ଜଣା
ଗ୍ରୀଷମ ଯାଏ ହାରି ।୪ ।

କେବଳ ଯାହା ବରଷା ଦିନେ
ଭିତରେ ପାଣି ପଶି,
ଦିନ କେତେଟା କାଦୁଅ ହୁଏ
ସଡ଼କ ଯାଏ ଧସି ।୫ ।

ଗୁରୁଜୀ ଆମ କହନ୍ତି ହସି
ଇସ୍କୁଲ ତୁମ ଘର,
ସଫା ରଖିବା ପାଇଁକି ତାକୁ
ସଦା ଯତନ କର ।୬ ।



ଭାବୁଛି ଏବେ ଧାଇଁ ମୁଁ ଯିବି
ଦେଖିବି ରୂପ ତା'ର,
କେମିତି ଅଛି ଗଛ ପତର
ପଡ଼ିଆ ଘରବାର ।୭।

ଅଳିଆ ଥିଲେ ଉଠେଇ ଦେବି
ଅସନା ଥିଲେ କାହିଁ,
ଓଲେଇ ଦେବି ଆଦର କରି
ଫୋପାଡ଼ି ଦେବି ନେଇ ।୮।

ମଦନ, ଯଦୁ ଟୁକୁନା, ହରି
ସୁମତି, ଲିଲି, ବାଜି,
ଆସିଲେ ସବୁ ସଭିଏଁ ମିଶି
ସଜାଡ଼ି ଦେବୁ ଆଜି ।୯।

ଇସ୍କୁଲ ଆମ ପାଠ ମନ୍ଦିର
ଆପଣାର ସେ ଅତି,
ଜଳୁଛି ସେଠି ଜ୍ଞାନ ଆଲୋକ
ଜଳୁଛି ପାଠବତି ।୧୦।



# ସେଇ ପିଲାଟି



ନଅ କି ଦଶ　　　　ବୟସ ତା'ର
କେଡ଼େ ସକାଳୁ ଦେଖ,
ମାଜୁଛି ବସି　　　　ବାସନ ସେଠି
ନାହିଁ ତାହାର ଭେଳ ।୧।



ମଇଳା ଜାମା ଯାଇଛି ଚିରି
ମଥାରେ ନାଇଁ ତେଲ,
ଶୁଣେନା ସିଏ କଥିଁଲ କଥା
କରେନା କେହି ଗେଲ ।୨।

ଶୀତରେ ଦେହ ଯାଉଛି ଥରି
ହାତରେ ପାଣି କନ୍ଦା,
ଆହୁରି ପୁଣି ମାଡ଼ିଛି ଦେହେ
ଅଇଁଠା ଯାଦୁ ମନ୍ଦା ।୩।

ସକାଳ ଶେଯେ ଅଳସ ପାଇଁ
ନାଇଁ ତାହାର ବେଳ,
ବହି ବସ୍ତାନି ଧରେନି ସିଏ
ଖେଳିନି କେବେ ଖେଳ ।୪।

ବାପା କି ମାଆ ଭାଇ ଭଉଣୀ
ପରିବାରର ସୁଖ,
ପାଇନି କେବେ ପାଇଛି ଯାହା
ଖାଲି ଗଞ୍ଜଣା ଦୁଃଖ ।୫।



ଏମିତି ପିଲା ଦେଖିଛ କି ନା
କହ କେଉଁଠି ଥାଏ,
କେଉଁଠି ଶୁଏ କେମିତି ରହେ
କଅଣ ସିଏ ଖାଏ ।୬।

ମଣିଷ ସିଏ ମଣିଷ ଆମେ
ତଥାପି ଭେଦ କିଆଁ,
ସେପରି ପିଲା ନିଇତି ସହେ
ଦୁଃଖ କଷଣ କିଆଁ ।୭ ।





# ଏଇବେଳେ ପୁଲକିତ

ରାତି ସରିଗଲେ ସକାଳ ଉତୁରେ
ଶୀତଳ ପବନ ଧରି,
ନିତି ନୂଆଲାଗେ ରୂପଟି ତାହାର
ନିଆରା ଛବିଟେ ପରି ।୧।

ଆଲୁଅ ତାହାର ମିଠା ମନୋହର
ଥିରି ସୁଲୁସୁଲୁ ବାଆ,
କାକର ସାଉଁଳା ଗଛଲତା ଭୂଇଁ
କି ସୁନ୍ଦର ଦିଶେ ଆହା ।୨।



ପାହାଡ଼ ସତେଜ ପଡ଼ିଆ ସତେଜ
ସତେଜ ପୋଖରୀ ତୁଠ,
ବିଲବାଡ଼ି ଘର ସହର ବଜାର
ସବୁଆଡ଼େ ଶୁଭେ ଉଠ ।୩।



ପାଣି ସିଞ୍ଚାହୁଏ ଧୂପ ଜଳି ଉଠେ
ଦୋକାନେ, ଗାଡ଼ିରେ, ଘରେ,
ସକାଳଟା ଅବା ପୂଜାପୂଜି ବେଳ
ଭକତିରେ ମନ ଭରେ ।୪।

ଘାସ ଗାଉଥାଏ ସ୍କୁଲ ଗାଉଥାଏ
ଚଢ଼େଇ ବି ଗାଏ ଗୀତ,
ମଣିଷରୁ ପଶୁ କୀଟରୁ ପତଙ୍ଗ
ଏଇବେଳେ ପୁଲକିତ ।୫।

ସକାଳଟା ପରା ନୂଆ ବିଶ୍ୱାସର
ମୁକୁଳା ଫାଟକଟିଏ,
କେତେ ସମ୍ଭାବନା ଆରପଟେ ତା'ର
ସେ କଥା କହିବ କିଏ ?।୬।

ପ୍ରତିଟି ସକାଳ ଖୁସି ଆଣିଦିଏ
ଭରିଦିଏ ନୂଆ ତେଜ,
ସକାଳ ନୁହଁଇ ଶୋଇବାର ବେଳ
ଏଇକଥା ମନେ ହେଜ ।୭।

❑



# ଜାଡ଼ିଲାଣି ଜଳଥଳ

ରାତି ବଢ଼ିଲାଣି ଶୀତକୁ ଆବୋରି
ଜାଡ଼ିଲାଣି ଜଳଥଳ,
ଦିନ ଛୋଟ ହୋଇ ଖରା ଖସିଲାଣି
ହଟିଲାଣି ତା'ର ବଳ ।୧।

ସକାଳ ମୁହଁରେ ପାଉଁଶା କୁହୁଡ଼ି
ବୋଳିଲାଣି ପାଉଡର,
କାକର ସାଉଁଳା ଗଛରେ ପତର
ଦିଶିଲେଣି ସରସର ।୨।



କମ୍ବଳ, ଚାଦର ଟୋପି, ସୁଏଟର
ଦେହ ବସିଲେଣି ମାଡ଼ି,
ଶୀତଟା ସତେ ବା ପରବ ତାଙ୍କର
ଲାଗିଲାଣି ତାଙ୍କ ଧାଡ଼ି ।୩।



ପାଚିଲା ଧାନର ଭାରେ ଧାନଗଛ
ବିଲେ ଯାଇଥିଲେ ଶୋଇ,
ଶୀତରେ ଶୀତରେ ଉଠି ଆସିଲେଣି
ଖଳାକୁ ଅମଳ ହୋଇ ।୪ ।

କାହିଁ କେତେ ଦିନୁ ଛପି ବସିଥିଲା
କୋଇଲି କେଉଁଠି ଥାଇ,
ସଜ ହେଲାଣି ସେ ତୋଟାମାଳ ବୁଲି
ଶୀତ ସରିବାକୁ ଚାହିଁ ।୫ ।

ଘୋଡ଼େଇ ପୋଡ଼େଇ ଶୋଇ ରହିବାକୁ
ହୁଏ ସିନା ଖାଲି ମନ,
ଶୀତ ସରୁ ସରୁ ବାର୍ଷିକ ପରୀକ୍ଷା
ଲାଗେ ଖାଲି ଛନଛନ ।୬ ।

କମ୍ବଳ ଭିତରେ ସପନ ଦେଖେ ମୁଁ
ଅବିକଳ ଯାଏ ଦିଶି,
କାକର କୁହୁଡ଼ି ପାଠ ପଢୁଛନ୍ତି
ଶୀତ ନାନୀ ସହ ମିଶି ।୭ ।





# କୁନି କୁନି ହୀରାଫୁଲ



ହେଇ କେ' ପାରିଛି ପତଳା ଚାଦର
ଢାଳିଛି ପାତଳ ଖରା,
ମାଟିରେ କୁହୁଡ଼ି ଆକାଶେ ସୂରୁଜ
ଲାଗିଅଛି ଧରାପରା ।୧।

ଆଉ ଅଳପକେ କୁହୁଡ଼ି ହଟିଲେ
ହସିବ ଆମରି ଗାଆଁ,
ପତରେ ପତରେ ଘାସରେ ଘାସରେ
ଦିଶିବ ତାହାରି ନାଆଁ ।୨।

ସୁନା ସକାଳର ସବୁଜ ଭୂଇଁରେ
ସବୁହେବ ଝଲମଲ,
ଚଉଦିଗେ ଆପେ ଚଅଁରି ଦିଶିବ
ଅସୁମାରି ହୀରାଫୁଲ ।୩।

କେଉଁ ଛଟକରେ ଟିକିଟିକି ଟୋପା
ବସିଥିବେ ଆସି ଆଗେ,
ଖରା ଛୁଆଁ ପାଇଁ ହସରେ ମାତିବେ
ଚକମକ ବଡ଼ ବାଗେ ।୪।

ଅନାଦି କାଳରୁ ଆସନ୍ତି ସେମାନେ
ଚିରି ଶୀତରାତି ଛାତି,
ଦିନ ବହକିଲେ ପୁଣି ହଜିଯିବେ
ବଢ଼ିଗଲେ ଖରାତାତି ।୫।

କେ' କହେ କାକର କେ' କହେ ଶିଶିର
କେ' କହେ ରାତିର ଲୁହ,
ରାତି ଅନ୍ଧାରରେ କେମିତି ଖସନ୍ତି
ଦେଖିଛି କିଏ ସେ କୁହ ।୬।

ପ୍ରକୃତି ଏମିତି କେତେ ପରକାରେ
ଭରିଛି ପସରା ତା'ର,
ଖୋଜି ଲୋଡ଼ି ତାକୁ ଉପଭୋଗ କଲେ
ପାଇବା ସୁଖର ସାର ।୭।

❑



# ଭାଇ ଭଉଣୀଙ୍କୁ ନେଇ

ରଥ ଯାଏ ଗଡ଼ି ଚକ ଯାଏ ଗଡ଼ି
ଯାତିରୀ ଭଳିକି ଭଳି,
ସିଂହ ଦୁଆରରୁ ଗୁଣ୍ଡିଚା ମନ୍ଦିର
ଗହଳି ନ ହୁଏ କଳି ।୧।

ଗୋଟି ଗୋଟି ହୋଇ ତିନି ରଥଯାକ
ଠାକୁର ତିନିଙ୍କୁ ନେଇ,
ଘିଡ଼ି ଘିଡ଼ି ଘିଡ଼ି ଗଡ଼ିଗଲା ବେଳେ
ମନ ନାଚେ ଥେଇ ଥେଇ ।୨।

କେଉଁଠି ବାଜୁଛି ଘଣ୍ଟ ଘଣ୍ଟା ଗିନି
ଖୋଳ ମରଦଳ ଢୋଲ,
କିଏ ସେ ନାଚୁଛି ହାତ ତାଳି ଦେଇ
କିଏ ଦିଏ ହରିବୋଲ ।୩।

ଜଗତ ବିଖ୍ୟାତ ଆମ ରଥଯାତ
କେତେ ଭଲଲାଗେ ମତେ,
ଭାଇ ଭଉଣୀଙ୍କ ଯାତରା ଭିଆଣ
ଅପୂର୍ବ ଲାଗଇ ସତେ ।୪।





ଏମିତି କେଉଁଠି ଥିବ କି ସଂସାରେ
କାହିଁ ଶୁଣିଛ କି କେହି,
ଜଗତ ଠାକୁର ଯାତରା କରନ୍ତି
ଭାଇ ଭଉଣୀଙ୍କୁ ନେଇ ।୫।
ପସରା ମେଲିଛି ବଡ଼ ଦାଣ୍ଡ ସାରା
ଆନନ୍ଦ ଉତ୍ସବ ଭରା,
ଆଖି ଆଉ ମନ ଭୋଜି ଖାଉଛନ୍ତି
ତିଳେ ନ ବାଧଇ ଖରା ।୬।
ଠାକୁର ମଣିଷ ସଭିଏଁ ଦାଣ୍ଡରେ
ହୋଇଛନ୍ତି ଆସି ମେଳ,
ନ ଦେଖିଲେ ଥରେ ପରତେ ନ ହେବ
ଧନ୍ୟ ଏ ଭକତି ଖେଳ ।୭।





## ଡର ମାଡୁଛି ମୋତେ

ଟିପି ଚଢ଼େଇ ସକାଳେ ଦିନେ,
କହିଲା ଆଗୋ ମାଆ,
କହିବି ଗୋଟେ କଥା ତୁମକୁ
ଆସୁଛି ମନେ ଯାହା ।୧।

ସେଦିନ ତୁମେ କହିଲ ମତେ
ପଉଷ ମାସ ଖରା,
ଦେହକୁ ଲାଗେ ଝୁମୁଝୁମିଆ
ସୁନ୍ଦର ଦିଶେ ଧରା ।୨।



ହେମନ୍ତ ଆସେ ଶିରିଶିରିକା
ଜାଡ଼ରେ ଭରି ରାତି,
ପଶୁରୁ ପକ୍ଷୀ ଲୋଡ଼ି ବସନ୍ତି
ଟିକେ ଉଷୁମ ତାତି ।୩।

ଶୀତ କୁଆଡ଼େ ବାଘ ପରିକା
ଶିଶିରେ ଆସେ ମାଡ଼ି,
କାକର ଛୁଆଁ ପରିବା କ୍ଷେତେ
ହସଇ ବିଲ ବାଡ଼ି ।୪।

ଦେଖ ଗୋ ମାଆ ହେଲାଣି ମାଘ
ଶୀତର ଦେଖା ନାଇଁ,
ଖରା ଗରମ ହେଉଛି ଫୋଡ଼ି
ଜାଡ଼ କାକର କାହିଁ ? ।୫।

ଲାଗଇ ମତେ ସତେ ଯେମିତି
ଛଅ ଋତୁର କଥା,
ମଣିଷ ଲାଗି ଗଲାଣି ହଜି
କଥା ହେଲାଣି ଲଥା ।୬।



କଅଣ ପାଇଁ ସବୁଠି ଏବେ
ଉଠୁଛି ଧୂଳି ଧୂଆଁ,
ଖରା ବରଷା ରହୁନି ମେଳ
ଶୀତ ବୁଲୁଛି ଭୁଆଁ ।୭।

କହୁଛ ପରା ମଣିଷ ଗୋଟେ
ବଡ଼ ବୁଦ୍ଧିଆ ପ୍ରାଣୀ,
ଉଜୁଡ଼ି ଯାଏ ସଂସାର ବୋଲି
ପାରୁନି କି ସେ ଜାଣି ।୮।

ବଣ ଜଙ୍ଗଲ ସାଗର ନଈ
ଠିକଣା ହୋଇ ଯେବେ,
ରହିବ ନାହିଁ କି ହେବ କହ
କିଏ ଜୀଇଁବ ତେବେ ।୯।

ମଣିଷ କଥା ଭାବିଲେ ମାଆ
ଡର ମାଡୁଛି ମତେ,
ଗଛ ବୁରୁଛ ଖାଇଲେ ହଣା
କଅଣ ହେବ ସତେ ।୧୦ ।

❑



## ସବୁ ସେଇ ଜଣେ

ବଡ଼ ଦାଣ୍ଡ କହେ
ମୋ'ଭଳି କିଏ,
ମୋହ ପାଇଁ ରଥ
ଯାତରା ହୁଏ,
ମୋହରି ପାଇଁ;
ରଥଚକ ଯାଏ
ଆଗକୁ ଧାଇଁ ।୧।

ଚକ କହେ ଶୁଣ
ସଡ଼କ ଭାଇ,
ତୁମର କିଛି ବି
ବଡ଼ତି ନାଇଁ,
ମୋ ଯୋଗେ ସିନା;
ରଥ ଗଡ଼ିଯାଏ
ଘିଇଡ଼ି କିନା ।୨।

ଅଖ ବୋଲେ ଚକ
ଥିଇରି ଶୁଣ,
ମୋହ ପାଇଁ ତୋର
ଗଡ଼ିବା ଗୁଣ,
ନ ଥିଲେ ମୁହିଁ;
ଦେଖିବା କେମିତି
ଗଡ଼ିବୁ ତୁହି ।୩।

ଅନିକିଳି ବସି
ଶୁଣିଲା ସବୁ,
କହିଲା ଅଖକୁ
ଶୁଣରେ ବାବୁ,
ଚକ କି ଅଖ;
ତୁମ ବୁଦ୍ଧି ସବୁ
ତୁମଠି ରଖ ।୪।



କେହି କିଛି ନୁହେଁ
ଶୁଣରେ ଭାଇ,
ସବୁ ସେଇ ଜଣେ
ଜଗତ ସାଇଁ
ଆମକୁ ଗଡ଼ି;
ଆପେ ଯାଉଛନ୍ତି
ରଥରେ ଚଢ଼ି ।୫।



# ନିଉନ ନୁହେଁ କେହି

ନିଜକୁ ନିଜେ ଆକଟ କର
ନିଜକୁ ନିଜେ ଗଢ଼,
ନିଜର ନିଜେ ସମୟ କାଢ଼ି
ଭଲ ବିଷୟ ପଢ଼ ।୧।

ନିଜକୁ ମଣ ବଡ଼ ମଣିଷ
ପାରିବ ସବୁ କରି,
ଚାହିଁବ ଯାହା ହୋଇବ ତାହା
ନାହିଁ କେ ତୁମ ସରି ।୨।

ଯେଉଁ କାମଟି ହେଉନି ହାତେ
ସେଇ କଥାଟା ପାଇଁ,
ନ ମାରି ମନ ଆହୁରି ଲାଗ
ନ ହେବା କିଛି ନାହିଁ ।୩।

ଆମ ଭିତରେ ରହିଛି ଛପି
କେତେ ଅଜଣା କଥା,
ଖୋଜିଲେ ନିଶ୍ଚେ ପାଇବ ତାକୁ
ଖେଳାଇ ଦେଖ ମଥା ।୪।





ଖେଳ ଖେଳିବା ଗୀତ ଗାଇବା
ପାଠ ପଢ଼ିବା ଭଳି,
ହଜାରେ କଥା ଭିତରେ ଅଛି
ପାରୁନା ଆମେ କଳି ।୫।

କେଉଁ ଗୁଣଟି ତୁମ ଭିତରେ
ଶୋଇଛି ଦେଖ ତାକୁ,
ଜାଣିଲେ ଥରେ ଉଠାଅ ଏବେ
ଦିଅନି ଶୋଇବାକୁ ।୬।

ପ୍ରତିଟି ପିଲା ଆପେ ଅଲଗା
ନିଉନ ନୁହେଁ କେହି,
ନିଜକୁ ନିଜେ ଚିହ୍ନିଲା ଯିଏ
ଜିଣିଲା ଜାଣ ସେହି ।୭।

❑

## ଏତିକି କରୁଣା କର

ଜଗନ୍ନାଥ ବୋଲି ନାମଟି ତୁମର
ତୁମେ କି ଜଗତ ନାଥ,
କି ପରିକା ନାଥ କହ ହେ ଠାକୁର
ନାହିଁ ତୁମ ଗୋଡ଼ ହାତ ।୧।



ଶୁଣି ଭକତଙ୍କ ଗୁହାରି କୁଆଡ଼େ
ଦେଉଅଛ ବରଦାନ,
ଆଖିରେ ଶୁଣ କି ନାକରେ ଶୁଣ
ନାହିଁ ତ ତୁମର କାନ ।୨।





ଜଗତଟା କାଳେ        ତୁମ ହତଗଡ଼ା
ଶୁଣ ହେ ସଂସାର ସାଇଁ,
ଦେଉଳେ କାହିଁକି        ହୁଣ୍ଡି ବସାଇଛ
ତୁମ୍ଭର କି କିଛି ନାହିଁ ।୩।

ଦିଅ ବୋଲି ପରା        ଦିଅଁ ତୁମ ନାମ
ଦାତା ଏକା ଭଗବାନ,
କେଉଁ ସାହସରେ        ଭକତେ ତୁମକୁ
ଦିଅନ୍ତି ଜିନିଷ ମାନ ।୪।

ପତିତପାବନ        ବାନା ତୁମ ଉଡ଼େ
ଦଳିତ ଉଦ୍ଧାର ପାଇଁ,
କହ କେଉଁପରି        କରିବ ଉଦ୍ଧାର
ଯୋଜନା ଖସଡ଼ା କାଇଁ ।୫।

ହୀରା ନୀଳା ପିନ୍ଧା        ସୁନାବେଶ ତୁମ୍ଭ
ଦିଶେ ବଡ଼ ଝଲମଲ,
ଗରିବ ରାଇଜେ        ଧନୀ ସାଜିବାକୁ
କେମିତି ମଣୁଛ ଭଲ ।୬।

ରଥ ଯାତରାକୁ ଛେଚା କଣ୍ଢ ଖାଇ
ବରଷକେ ଥରେ ଆସି,
ବାଟ ଲୋକ ସାଜି ହାଟରେ ମିଶିଲେ
ଦୁଃଖ ଯିବ କିବା ଭାସି ।୭।

ତୁମେ ଯଦି ପ୍ରଭୁ ଜଗତର ନାଥ
ଏତିକି କରୁଣା କର,
ସବୁରି ଭିତରେ ସେନେହ ପିରତି
ସମାନତା ଯେତେ ଭର ।୮।





# ଘୂରୁଥାଏ ବେଳକାଳ



ଖରା ଗଡ଼ିଯାଏ
ଦିନ ଗଡ଼ିଯାଏ
ସଞ୍ଜ ନଇଁଆସେ ଥିରି,
ଟିକି ଟିକି ତାରା
ମିଟିକା ମାରନ୍ତି
ଆକାଶର ଛାତି ଚିରି ।୧।

ରାତି ସରିଯାଏ
ଅମା ଲୁଚିଯାଏ
ଆକାଶେ ଚହଟେ ନାଲି,



ଲାଲ୍ ଟମ୍ ଟମ୍
ସୂରୁଜ କିରଣେ
ସୁନା ହୁଏ ନଈ ବାଲି ।୨।
ରବି ଉଇଁଆସେ
ଜହ୍ନ ଉଇଁଆସେ
ମେଘ ହୁଏ ରାଉ ରାଉ,
ବରଷା ପବନ
ବିଜୁଳି ବତାସ
ଦେଖାଅନ୍ତି କେତେ ଭାଉ ।୩।
ଗଛ ବଢୁଥାଏ
ଲତା ବଢୁଥାଏ
ବଢୁଥାଏ ଫୁଲ ଫଳ,
ପାଣି ଫୁଲୁଥାଏ
ବରଷା ଆସିଲେ
ଘେରିଯାଇ ଜଳ ଥଳ ।୪।
ଫୁଲ ଝଡ଼ିଯାଏ
ଫଳ ଝଡ଼ିଯାଏ
ଭାଜି ପଡ଼େ ଗଛଡ଼ାଳ,
ଝରି ଝରି ଯାଏ
ଗଛରୁ ପତର
ଅସରନ୍ତି ମାଳ ମାଳ ।୫।







ନଈ ସମସ୍ତଙ୍କର ପ୍ରିୟ । ତା'ର ଭୀମ ରୂପ ଯେମିତି ଛାତିକୁ ଛୁଏଁ ସେମିତି ତା'ର କୁଳୁକୁଳ ଗୀତ, ମନ ହରଣ କରେ । ତା'ର ଘୋ' ଘୋ' ପଛରେ ସାଉଁସାଉଁ ଉଦ୍‌ବେଳନ ସହିତ ଅଛି ଘୋର ଘର୍ଘର ଉଚ୍ଚାଙ୍ଗ ସଙ୍ଗୀତ । ଏଇ ଘୋ' ଘୋ' କେବଳ ଗୋଟେ ପରଦା । ପରଦା ପଛରେ କେତେ ନା କେତେ ରୂପ ଓ ନାଦ ଭଳି ଅଛି ଅଗଣିତ ଭାବନାର ଚକ୍‌ଚକ୍ ପାଣିଫୁଲ । ''ନଈପାଣି ଘୋ' ଘୋ' ପିଲାମାନଙ୍କ ପାଇଁ ଲେଖାଯାଇଥିବା ଏକ ଗୀତ ସଂକଳନ । ପ୍ରତି ଗୀତ ଗୋଟିଏ ଗୋଟିଏ ଅକ୍ଷର ଛବି, ଭାବନାର କାଚ ପାଣିଫୁଲ ।

ଦାଶ ବେନହୁର, ଓଡ଼ିଆ ସାହିତ୍ୟର ଏକ ଜଣାଶୁଣା ନାମ । ଶିଶୁ-କିଶୋର ମାନଙ୍କ ପାଇଁ ଲିଖିତ ତାଙ୍କର ପ୍ରତିଟି ସୃଷ୍ଟିରେ ଉଭୟ ଆନନ୍ଦ ଓ ଆଲୋକର ସମ୍ମିଶ୍ରଣ ବେଶ୍ ମନଛୁଆଁ । ବାଳୁତ ଜୀବନର ବିସ୍ତାରିତ ସବୁଜ ଇଲାକାରେ ଉଙ୍କିମାରୁଥିବା ଅସୁମାରି ପ୍ରଶ୍ନ ହିଁ ତାଙ୍କ ଲେଖକୀୟ ବାସ୍ତବତାକୁ ପ୍ରେରଣା ପ୍ରଦାନ କରେ ।

ସାଂପ୍ରତିକ (
''କଥାକା[illegible] ...୨୧, ଶୈଳଶ୍ରୀ ବିହାର, ଭୁବନେଶ୍ୱର-୭୫୧୦୨୧



କାଞ୍ଚନ, ଗଜପତି ନଗର,
ସୁତାହାଟ, କଟକ-୭୫୩୦୦୧

ISBN 978-81-86475-61-4